# ଶୋଭା ସୁନ୍ଦରୀ ।

ଶ୍ରୀଦୀନବନ୍ଧୁ ଗଡନାୟକ
ପ୍ରଣୀତ ।

ହିତୈଷିଣୀ ଇଲେକ୍ଟ୍ରିକ୍ ମେସିନ ପ୍ରେସରେ
ମୁଦ୍ରିତ ।

ବାମଣ୍ଡା ।

୧୯୧୨

ମୂଲ୍ୟ ଏକଅଣା ମାତ୍ର ।

ବହୁବିଧ ଗଦ୍ୟ-ପଦ୍ୟ-କାବ୍ୟ (ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ); 'ଅଳଙ୍କାର ସାର' ଓ ଭାବମୟୀ ପ୍ରକୃତର ଜୀବନ୍ତ ଚିତ୍ର 'ଯୌନ-ନିର୍ବାଚନ' କାବ୍ୟର ପ୍ରଣେତା, ବିଜ୍ଞାନ-ବିନୋଦ, ରାଜକବି, ପ୍ରଜାବତ୍ସଳ ବାମଣ୍ଡାଧୀଶ୍ୱର

## ଶ୍ରୀମାନ୍ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ

ଫିଉଡେଟର ଚିଫ୍ ମହୋଦୟଙ୍କର

ମନ୍ତବ୍ୟ: —

"ଶୋଭା ସୁନ୍ଦରୀ" ମୁଁ ଆମୂଳଚୂଳ ପଢ଼ି ବାସ୍ତବିକ ଆନନ୍ଦିତ ହୋଇଅଛି । ଏଥିରେ ଲେଖକଙ୍କର ଯଥେଷ୍ଟ କବିତ୍ୱ ପ୍ରକାଶିତ ହୋଇଅଛି । ବାମଣ୍ଡାରେ ଏପ୍ରକାର ଲେଖକର ସଂଖ୍ୟାବୃଦ୍ଧି ମୁଁ ଅନ୍ତରରୁ ଇଚ୍ଛାକରେଁ । ଇତି ।

୩ । ୧୦ । ୧୯୧୬ } (ସ୍ୱାକ୍ଷର)

ଦେବଗଡ, ବାମଣ୍ଡା } ଶ୍ରୀ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ

" ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ । "

---

ପରମାରାଧ୍ୟା ସ୍ନେହମୟୀ

ସ୍ୱର୍ଗୀୟା

ମା' ଙ୍କର

ପଦାମ୍ବୁଜ ଉଦ୍ଦେଶ୍ୟରେ

ଅଶ୍ରୁ-ଜଳ-ସ୍ନାତ-

ଶାଶ୍ୱତ ଦେବୀତ୍ୱସମ୍ଭୃଦ୍ଧ

'ଶୋଭା ସୁନ୍ଦରୀ'—

ପୁଷ୍ପାଞ୍ଜଳି

ଅର୍ପଣ କଲି ।

ଶ୍ରୀଦୀନବନ୍ଧୁ ଗଡନାୟକ

୩୦ । ୯ । ୧୬

# ଶୋଭାସୁନ୍ଦରୀ ।

" ଖଂ ବାୟୁମଗ୍ନିଂ ସଲିଲଂ ମହୀଂଚ
ଜ୍ୟୋତିଂଷି ସତ୍ତ୍ୱାନି ଦିଶୋ ଦ୍ରୁମାଦୀନ୍ ।
ସରିତ୍ସମୁଦ୍ରାଂଶ୍ଚ ହରେଃ ଶରୀରଂ
ଯତ୍କିଞ୍ଚଭୂତଂ ପ୍ରଣମେ ଦନନ୍ୟଃ । "

---

ଭୀମ ପ୍ରଭଞ୍ଜନ-ଶକ୍ତି ପ୍ରଭାବେ ବ୍ୟଥିତ
ଶତ କୋଟି କଲ୍ଲୋଳରେ ସଦା ଉଚ୍ଛ୍ୱସିତ
ଅସୀମ ଜଳଧି ମଧ୍ୟେ କ୍ଷୁଦ୍ର ତରୀପରେ
ଦୁଃସାହସେ ନର ଯଥା ଗମେ ନର୍ଭୟୃରେ;
ଭାବରତ୍ନଚୟେ ପୂର୍ଣ୍ଣ ସାହିତ୍ୟ ଭଣ୍ଡାର
ମଗ୍ନ ନୃପତି-ସଦନ ଅର୍ଥ, ଅଲଂକାର
ସପ୍ତ ବେଢ଼େ ପ୍ରହରୀର କରାଳ ଦର୍ଶନ
ଦର୍ଶନରେ ନୁହେଭୀତ ଯଥା କ୍ଷିପ୍ର ଜନ
ଧନଲୋଭେ ଦୁଷ୍କରତେ କରେଧରି ଧନୁ

ବୁଦ୍ଧି ସାବଧାନ ହୀନେ ନାଶେ ତହିଁ ତନୁ;
ଅବା ଗୀକ୍ଷ୍ଣ ତରବାରି କର ବ୍ୟବହାର
ଇଚ୍ଛାମତେ ଶ୍ରେଷ୍ଠଧନ କରେ ଅଧିକାର ;
ସେ ସାହସେ ଅଭ୍ରଭେଦୀ ଗିରି ଶୃଙ୍ଗୋପରେ
ପ୍ରବେଶାର୍ଥେ ଅଗ୍ରସର ହେବନ୍ତି ନିର୍ଭୟରେ
ଭବିତବ୍ୟ ପ୍ରାଣ-ପଣେ ଯା ଥାଉ ଅଙ୍କିତ
ହେ ଉତ୍କଳ ମାତଃ ! ମୁହିଁ ନୁହଇ ଶଙ୍କିତ
ଅଭୀପ୍ସିତ ପଥ ଥରେ ଅଙ୍ଗୁଳି ନିର୍ଦ୍ଦେଶ
କରି, ଦୀନେ ଦେଖାଅ ଗୋ ଦେଇ ଉପଦେଶ ।

ଦେବ ନୟନ ରଞ୍ଜନ କୈଳାସ ଭୂଧର
ପ୍ରକୃତ-ବୈଭବ ସୁଖେ ସୁଖୀ ନିରନ୍ତର ।
କୁଳୁ କୁଳୁ ନିନାଦିନୀ ସୁନ୍ଦରୀ ତଟିନୀ
ପତି-ବିରହ-ବଧୂରି ଦୁଃଖାଭିମାନିନୀ
ରୁକ୍ମାଙ୍ଗ-ପୁରୀ ମଧ୍ୟେ ଯେସନ ରୁକ୍ମଣୀ
କୃଷ୍ଣ ଚିନ୍ତାରେ ଚିନ୍ତିତା ଦିବସ-ରଜନୀ
ମନୋମତ ଫଳଲଭ ଆଶା ଧେନି ମନେ
ବିହରନ୍ତ; ତଥାପିକେ ସ୍ୱପତି ମିଳନେ ।

ଚିତ୍ତବିନୋଦନା ମର୍ମ୍ମ ବେଦନା ହାରଣୀ
ଶିକ୍ଷିତା ଲଳନା ଯଥା ପଗୁଣ ସଙ୍ଗିନୀ
ସଙ୍ଗେ ବସି ନବ୍ଯୁଭରେ ହାସ୍ୟ ଉତ୍ପାଦକ
ଗଳ୍ପଗାଥା ଉପନ୍ୟାସ ଅନନ୍ଦ ଦାୟକ
ପାଠକୁଲେ କରେ ଶାନ୍ତ ହୃଦୟ ଅନଳ
ସ୍ରୋତସ୍ୱିନୀ ସଖୀ ମେଳେ କ୍ରୀଡେ ଅବିରଳ ।

ବ୍ରଜସର ପଙ୍କଜନୀ ବ୍ରଜାଙ୍ଗନା ଗଣ–
ସହ ରଙ୍ଗେ କ୍ରୀଡ଼ାରତ ଯଶୋଦା ନନ୍ଦନ
କଂସରାଜ – ରାଜଧାନୀ ମଥୁରା ନଗରୀ
ଗମି ପ୍ରତ୍ୟାବୃତ୍ତ ଯେବେ ନୋହିଲେ ଶ୍ରୀହରି
ଅଦ୍ୟାବଧି ମଥୁରା ତ ସୁନ୍ଦର ଯମୁନା
ଖାନେ ନର୍ତ୍ତନେ ନପାଇ ମାଧବ–କରୁଣା ?

ବିଳାସିନୀ ଶ୍ୱେତାଙ୍ଗିନୀ କିଶୋରୀ ତଦ୍ୱରତ
ନବନବ ଗାନପକ୍ଷୀ କୂଜନେ କୂଜିତ
ବନସ୍ଥଳୀ ଶଢ଼ଗ୍ରାହ ଭରି ହୃଦ–ଯନ୍ତ୍ରେ
ଫନୋଗ୍ରାଫି ସୁକୌଶଳେ ଗାଏକି ସ୍ୱତନ୍ତ୍ରେ ?

ପୁଁନାମ ନରକ ତାହିଁ ପୁଏ ସ୍ନେହ ଖେଳେ
ସ୍ତନ୍ୟଦାନେ ସୁତାନନେ ବହେ ସଚଞ୍ଚଳେ
ପ୍ରକୃତ ଦେବୀର ଉଚ୍ଚ ଚିର ପୟୋଧରୁ
ନବୀନାମେ ଅଭୃତ୍ବତ ନର ନିକଟରୁ ;
ଅମରାବତୀର ଯଥା ଶୁଭ୍ର ମନ୍ଦାକିନୀ
ସୁଧାରସ ପରିପୂର୍ଣ୍ଣ ଆନନ୍ଦ ଦାୟିନୀ
ନାଗଲୋକେ ବାସୁକିର ଉର୍ଦ୍ଧ୍ୱ ଚିରଶାନ୍ତ
ଭାଗ୍ୟଦାୟୀ ଭୋଗବତୀ ଅନୁବ୍ରତେ ଥାନ୍ତ ।

ଦାରୁଣ ନିଦାଘକ୍ଳିଷ୍ଟା ପ୍ରକୃତ ରାଣୀର
କୋମଳ ଗାତ୍ରରୁ ସତେ ବହେ ସ୍ୱେଦନୀର
ରାମଚିନ୍ତା-ନଳ ଦଗ୍ଧା ପତି ସୋହାଗିନୀ
ଚେଡୀଗଣେ ପରିବେଷ୍ଟା ଜନକ-ନନ୍ଦିନୀ
ଅଶୋକ କାନନେ ଯଥା ସର୍ବଦା ଅଶ୍ରୁଜଳେ
ଭନ୍ତ, ବୁହାଇଲେ ଗଣ୍ଡସ୍ଥଳୁଁ ପଦତଳେ ।

ଯୋଗୀଯୋଗ ବିନାଶିନୀ ମଦନମୋହିନୀ
ରତିଦେବୀ ଫୁଲରାଣୀ ବେଶ ବିଳାସିନୀ

ପଶ୍ଚିଠେପୂ ଦୁକୂଳର ଶୋଭା ଦରଶନେ
ବିସ୍ତାରିଛୁ କୌତୂହଳେ ଶତେକ ଯୋଜନେ ?

ବିଧାତାର ପ୍ରିୟପୁତ୍ର ବିଶ୍ୱ ଶୋଭା ରାଶି -
ରଚୟିତା ବିଶ୍ୱକର୍ମା । ଯଧ୍ୟପାର୍ଶ୍ୱେ ଅସି
ଅନେକ ପ୍ରୟାସେ ରଚି ହୀରକର ମାଳୀ
ପିତା-ପଦେ ପୂଜିବାରୁ ଭରି ସ୍ୱର୍ଣ୍ଣ ଥାଳୀ
ବିଧିଦତ୍ତ ଯଡ୍‌ଭୁକ କରି ପରିଧାନ
ପୃଥ୍ୱୀ କନ୍ୟା ଗର୍ବଭରେ କରେ ଅଭିମାନ ?

ମହାଯୋଗ ଧ୍ୟାନରତ ଅଚଳ ଅଟଳ
ଗିରିବକ୍ଷେ ଯଜ୍ଞ ଉପବୀତ କି ସୁନ୍ଦର ?

ନାନାବିଧ ଲତାପୁଷ୍ପ ଉପଲୋପରି ହସି
ମଳ ମଳେ ଶୋଭିତ କି ନକ୍ସା ବନାଗ୍ରସି ?
ଜଳେ ଥରଥରେ ମୀନ କରେ ସନ୍ତରଣ
ସଜୀବତା ହୀରା ନାଳା ପରିଏ ଦର୍ଶନ ।

ନିର୍ଦ୍ଦୟ ନିର୍ମ୍ମମ ପତି ରିପୁ-ଆଚରଣେ
ପାଇ ବହୁ ନିର୍ଯ୍ୟାତନ ଦୁଃଖ-ହୁତାଶନେ-
ଦଗ୍ଧ କଳେବର ଅବା ମଳିନ ବଦନେ
ଛାୟାନାମ୍ନୀ ପତି ସୁଖ ଛାଡ଼ ସଂଗୋପନେ
ତରୁତଳେ ମଧ୍ୟାହ୍ନରେ ଲୁଚ କିଛୁକ୍ଷଣ
ନଦୀ-ନୀରେ ପ୍ରାଣ-ଆଶା କରେ ବିସର୍ଜ୍ଜନ
ନାରୀ ଦୁଃଖ ନାରୀ ବିନା ଜାଣଇଁ ଉତ୍ତମେ
ରାଜ କନ୍ୟା ସ୍ରୋତସ୍ୱିନୀ ଯଥା ସସମ୍ଭ୍ରମେ
‘କଲ କଲେ’ କହେ ସଖି ! ନଭ୍ରବ ଅପର
ବିଶ୍ରାମ କର ନିର୍ଭୟେ ଯଥେଚ୍ଛା ତୋହର
‘ଛାୟାପଥେ’ ମନୋହର ଯଥା ନଭଃସ୍ଥଳେ
ସୁନୀଳ ଜଳଦ ଶ୍ରେଣୀ ଖେଳେ ଅମ୍ବରଳେ ।

ପ୍ରହରୀ ସ୍ୱରୂପ ଉଚ୍ଚ ମହୀରୁହ ଗଣ
ସ୍ଥିର କିମ୍ବା ଶୀଖ ସୈନ୍ୟ ଦୃଢ଼କର ମନ
ବିପକ୍ଷର ପ୍ରହରଣ ବାୟୁ ତୀକ୍ଷ୍ଣ ଶର
ଅସମର୍ଥ କରିବାକୁ ସ୍ୱସ୍ଥାନୁଁ ଅନ୍ତର
ମସ୍ତକରେ ଶୁଭ୍ର ପୁଷ୍ପ-ପୁଞ୍ଜ ଚକ୍ର ରୂପେ

ନୀଳ ଶିରସ୍ତ୍ରାଣ କିବା ବାନ୍ଧିଛି ଉଡ଼ୁପେ ?
ବଜ୍ରାୟୁଧେ ଗିରିବର-ପକ୍ଷ ଏସକଳ
ପଡ଼ିଲେ ପତିତ ଇତସ୍ତତଃ କ୍ଷିତିତଳ ?

ବିପିନ କୁମାରୀ ବାୟୁ ପଙ୍ଖର ବାହନ
ମୃଦୁ ଲେଖା ଲୌପ୍ୟ ଝୋପା ଯୋଗେ ସୁଶୋଭନ
କ୍ଷୀଣକାୟା କୁରଙ୍ଗିନୀ ସହିତ କୁରଙ୍ଗ
ନିଃଶଙ୍କରେ କ୍ରୀଡ଼ାସକ୍ତ କରୁ ନାନାରଙ୍ଗ ।
ଥରେ ଥରେ ପ୍ରେମଭରେ ଶୃଙ୍ଗ କଣ୍ଡୂୟନେ
ସ୍ୱପ୍ରିୟା କଣ୍ଡୂଳ ଗୋନ୍ଦ ଆଉଁସି ସୁମନେ
କର୍ପୂର – ସୌରଭେ ପୂର୍ଣ୍ଣ ବନବନାନ୍ତରେ
ରୁଚିର କସ୍ତୁରି – ମୃଗ ନାଚେ ଉଲ୍ଲାସରେ ।
ଜ୍ୟୋତ୍ସ୍ନା – ଅଭ୍ର – ଝିଟକିତ ଚାମର ଦୋଳାଇ
ବୁଲନ୍ତି ପୃଥୁଳ ଚମ୍ବୀ ଶତ ଶତ ଗାଈ ।
ଦୀର୍ଘ ଶୃଙ୍ଗ ଶିରେ ଧରି ସବଳ ସମ୍ବର
"ପୃଷ୍ଠଭଙ୍ଗ ସେନାବତ" ଧାଏଁ ଖରତର ।
ଅନ୍ୟ ଅନ୍ୟ ଦେଶେ ତୃଣଜୀବୀ ଜନ୍ତୁଗଣ
ଦଳେ ଦଳେ ବିହରନ୍ତି କେ କରେ ଗଣନ ।

ଏକ ତରୁ-ଶାଖାପରୁଁ ଅନ୍ୟ ଶାଖାପରେ
ସୁକୌଶଳୀ ଶାଖାମୃଗ ଲମ୍ଫ ପ୍ରଦାନରେ
ପବନରେ ପୁଞ୍ଜ ପୁଞ୍ଜ ଯଥା ଶିମ୍ଳୀ ତୁଳ
ହସ୍ତାନ୍ତରେ ପଡେ କିବା କନ୍ଦୁକ ବର୍ତ୍ତୁଳ
ହୁଁ ହୁଁ କାରେ ପ୍ରକମ୍ପିତ ପର୍ବତ କନ୍ଦର
ଘଡଘଡ ଶବ୍ଦେ ପୂର୍ଣ୍ଣ ଯେସନ ଅମ୍ବର ।
ଗଣ୍ଡାର ବରାହ ବନ୍ୟ ମହାବଳବାନ
ଲୌହ ସମ ପାଷାଣରେ ତନୁ କି ନିର୍ମାଣ
ସେନାପତି ପ୍ରାୟୁଧର ଖଡ୍ଗ ତୀକ୍ଷ୍ଣତର
କରେ କିରେ ପରପକ୍ଷ ନୟନ ଗୋଚର ?
ସଜଳ ଜଳଦ ଶ୍ରେଣୀ ପ୍ରାୟୁ ବହୁଯୂଥେ
କରଣୀ ସଙ୍ଗତେ କରୀ ଭ୍ରମଇ ନଭୃତେ ।
ଶରଭ ହର୍ଯ୍ୟକ୍ଷ ଆଉ ନୃଶଂସ ଶାର୍ଦ୍ଦୁଳ
ଘଡଦ୍ବଂସୀ ପ୍ରାଣୀଗଣେ ହୋଇ ଏକଠୁଳ
ଇନ୍ଦ୍ରଜାଲ ଖେଳ ଯଥା ମାୟାର ପୁତୁଳ
ପ୍ରାଣୀହତ୍ୟା କାର୍ଯ୍ୟ ଯେତେ ଯାଇଛନ୍ତି ଭୂଲ ।

ନବନୀତେ ମକରନ୍ଦେ ରଚି ନବତନୁ

ଯଥା ଅଂଶ ପୁଣି ରଞ୍ଜି ନେଇ ସପ୍ତ ବର୍ଣ୍ଣ
ଷଡସ୍ୱର ଷଡତ୍ରିଂଶ ରାଗିଣୀ ସହିତ
ତଥିମଧ୍ୟେ ବିଧାନରେ କରି ସଂକଳିତ
ଦୁଇପାଖେ ଦୁଇପକ୍ଷ ସ୍ନେହେ କରି ଦାନ
ବିଧି ଯେବେ ସୃଜଦେଲେ ଶେଷେ ଦେଇପ୍ରାଣ:
ଭ୍ରମି ତଳେ ତରୁଡାଳେ ନୀଳ ନଭସ୍ଥଳେ
ରଚନ୍ତି ମଧୁର ଗାନ ବିହଙ୍ଗ ସକଳେ ।
ଅତ୍ରୁ ସୁଖ-ଦୁଃଖ ତୃପ୍ତା ସୁଷମା ମାଳତୀ
ପ୍ରୀତିଦାନେ ସଦାବ୍ରତୀ ସୁଶୀଳା ସେବତୀ
ବିରହୀ ଜନ-ହୃଦୟ ଚଞ୍ଚଳ କାରକ
ସ୍ୱ ଶ୍ରୀପଦେ ଖ୍ୟାତିପ୍ରାପ୍ତ ପ୍ରସୂନ ଚମ୍ପକ
ଶୋକହର ସ୍ୱନାମରେ ବିଖ୍ୟାତ ଅଶୋକ
ପାରିଜାତ ପକ୍ଷୀସମ ପ୍ରମୋଦ ଦାୟକ
ହୀରକ ପରାଏ ଶୋଭେ ମଲ୍ଲୀ ମନୋହର
ସ୍ଥଳପଦ୍ମ ପୁଞ୍ଜିକୃତ କିବା ରବିକର
ନାଗେଶ୍ୱର, କୁଇଜାଇ ଆଦି ପୁଷ୍ପତରୁ
ନାନା ବର୍ଣ୍ଣେ ଭିନ୍ନାଭିନ୍ନେ ଦିଶନ୍ତି ସୁଚାରୁ ।
ସନାମ ଅନାମ ଯଥାତଥା ପୁଷ୍ପଚୟ

ବନଶୋଭାଧାର ଗ୍ରାମେ କ୍ରୋଡ଼ରେ ତା' ଅସୃ
ଲତାକୁଞ୍ଜେ ବହୁପୁଷ୍ପ ହେଉଁ ପ୍ରସ୍ଫୁଟିତ
ନୀଳବସ୍ତ୍ର ପୁଟି ରତ୍ନମାଳା କି ଶୋଭିତ ?
ମଧୁପାନେ ସଦାମତ୍ତ ମଧୁପ-ମଧୁର-
ଝଙ୍କାରରେ ବନସ୍ଥଳୀ ହୁଅଇ ଚହଳ
ନେତ୍ରଲୋଭା ସୁଚିତ୍ରିତ ଅମୂଲ୍ୟ ବସନ
ବନଦେବୀ କରିଛି କି ଗାତ୍ରେ ଆବରଣ ?
କୃଷ୍ଣମେଘେ ଛିନ୍ନଭିନ୍ନ ହୋଇ ଇନ୍ଦ୍ରଧନୁ
ଥୋପି ପୁଞ୍ଜାକାରେ ସତେ ପଡ଼ନ୍ତି ଗଗନୁଁ !
ସୌନ୍ଦର୍ଯ୍ୟ ସହିତ ଗୁଣ ଯହିଁ ସମାଶ୍ରିତ
କିଅଛି ଧରାରେ ତାହା ହେବ ଉପମିତ ।
ବର୍ଷାହୃତ ଗନ୍ଧବହ ଘେନି ପରିମଳ
ପ୍ରାଣୀଗଣ ତାପହାରି କରେ ସୁଶୀତଳ
ସଞ୍ଜୀବନୀ ମନ୍ତ୍ର-ପୂତନୀରେ ଚତୁର୍ମୁଖ
ହତ କପିସୈନ୍ୟେ ଯଥା କଲେ ଜାଗରୁକ ।
ବ୍ରତତୀର ସହଯୋଗେ ପାଦପ ସକଳ
ପର୍ଣ୍ଣେ ପର୍ଣ୍ଣେ ଘଞ୍ଚଭାବେ ହୁଅଇ ଗହଳ
ଧନଞ୍ଜୟ ପାର୍ଶ୍ୱେ ଯଥା ସୁଭଦ୍ରା ସୁନ୍ଦରୀ

ଲଙ୍କାଭରେ ଇନ୍ଦ୍ରାଙ୍କ ପଞ୍ଚସ୍ତମ୍ଭ ଢ଼ାଲ ।
ରକ୍ତ ପୀତ ନୀଳ ବର୍ଣ୍ଣ ନରତଣ୍ଡ ହରା
ବାଙ୍କଫାଟି  ଶତଲକ୍ଷ ଅକାଶର ଭାରା
ଏକସ୍ଥାନେ ସମାବେଶ, ସୌନ୍ଦର୍ଯ୍ୟ ଆଧାର
କାରୁକାର୍ଯ୍ୟ ସୁଖଚିତ ଅବା ରତ୍ନାଗାର ?
ଏକସଙ୍ଗେ ଏକତାନେ ଧ୍ରୁପଦ ଗଦରେ
ଝଙ୍କାରଇ ଶତବୀଣା ଯଥା ରସଭରେ
ହରବୋଲ ଭୃଙ୍ଗରାଜ ବିହଙ୍ଗର ଶିଶି
ହିଙ୍କାରି ଝଙ୍କାର ତଦ୍ଧିଂ ମୁହୁର୍ମୁହୁ ମିଶି
କୋକିଳ କଣ୍ଠ ନିଃସୃତ ସୁଲଲିତ ଗାନ
ସଙ୍ଗ ଅନୁସରି ଉଠି ମୁଗ୍ଧକରେ ପ୍ରାଣ ।
ମଳୟ, କୁସୁମ-ଦ୍ଧେଯାଡ-ଲୁଣ୍ଠା ଚୂପଧର
ବିହରନ୍ତି କାମସଙ୍ଗ ରତି ଫୁଲେଶ୍ୱରୀ
ସୁଖନୀରେ ସୁଖଆଶା-ନାବେ ବସି ସୁଖେ
ସୁଖ-ପବନରେ ଗମି ଭୋଳ ପୂର୍ଣ୍ଣସୁଖେ,
ସ୍ୱଭାବ-ସୁନ୍ଦରୀ ଖଟି ଚାକରାଣୀ ଛନ୍ଦେ
ଶୋଭାରତ୍ନ ହାର କଣ୍ଠେ ପିନ୍ଧାଏ ଆନନ୍ଦେ ।
ସୌନ୍ଦର୍ଯ୍ୟରେ ପରିପୁଷ୍ଟ କୈଳାସ ଭୂଧର

ଚତୁର୍ଦ୍ଦିଗ ଅବଲୋକେ ଉଚ୍ଚକର ଶିର
ନିରାଲମ୍ବ ଅମ୍ବୁବାହ ମୁକୁଟ ପରାଏ
ସ୍ୱର୍ଣ୍ଣଖଚିତା ବୈଦୂର୍ଯ୍ୟମଣି ସହ ସଦାଥାଏ
ଭ୍ରମର-କାନ୍ତ ଗଞ୍ଜିତ କୁନ୍ତଳେ ସୁମନ
ଖଞ୍ଜି ନବାଙ୍ଗନା କରେ କି ଧରା ଦର୍ଶନ ?
କିରଣ ରସାଣେ ମଜା ଉଜ୍ଜ୍ୱଳ ରଜତ-
ସ୍ୱର୍ଗ-ସୋପାନ ପରାଏ ହିମାଦ୍ରୀ ଉନ୍ନତ ।
ଅଷ୍ଟ ରତ୍ନାନ୍ୱିତ ଗିରି-ଗହ୍ୱର-ଉତ୍ସଙ୍ଗେ
ବଚସଂ ସ୍ରୋତ-ପ୍ରବାହ ଖେଳୁଥାଏ ରଙ୍ଗେ ।

ପ୍ରକୃତିର କୋଳେ ବଢ଼ି କେତେ ନରନାରୀ
ସ୍ୱଭାବ ସ୍ୱାଧୀନ ଭାବେ ଭପୃକୁ ନିବାରି
ବିଚରନ୍ତି ପ୍ରାକୃତିକ ଗୁଣକୁ ଆଦରି
ରହି ପର୍ଣ୍ଣବାସେ ଶାନ୍ତ ପଥ ଅନୁସରି ।
ଟେକି ମିଥ୍ୟା କପଟତା ସଂସାର-ଜଞ୍ଜାଳ
ପଶିନାହିଁ ସେହିକାଳ ମଧ୍ୟେ ଏତେକାଳ ।
ସ୍ୱଭାବେ ସୁନ୍ଦର ତନୁ, ସାହସେ ଅଟଳ

ସୁଖେ ଥାନ୍ତୁ ହୋଇ ପରସ୍ପରେ ଅନୁକୂଳ ।

ତ୍ୱବା ଅନ୍ତେ ସନ୍ଧ୍ୟାଦେବୀ ପ୍ରଶାନ୍ତ କପାଳେ
ବିବିଧ ବରଣ ଚିତ୍ରା ରଞ୍ଜିଣ କୌଶଳେ
ଧୀରେ ଧୀରେ କୃଷ୍ଣକେଶ ବିସ୍ତାରି ଯତନେ
ଧନକ ଲଗାଏ ଅଗେ ମାନବ ନୟନେ ।
ରଜନୀ ଅଙ୍କରେ ଗାଦ ସୁନୀଲ ବସନେ
ବିମଣ୍ଡିତ ଜ୍ୟୋତିର୍ମ୍ମୟ ତାରକା ରତନେ,
ଲଲାଟରେ ମଥାମଣି ସ୍ୱଚ୍ଛ ପୂର୍ଣ୍ଣଇନ୍ଦୁ
ଯାହା ଦର୍ଶନରେ ମହା ଉତ୍ଫୁଲ୍ଲିତ ସିନ୍ଧୁ ।
ଅନନ୍ତ ଅକାଶ ପଟେ ବିଧିର ସୃଜନ
ନ ବୁଝି କଣିକା ମାନ ଅନ୍ଧ ନରଗଣ !
ମୃଦୁ ନୈଶ ସମୀରଣ ହୋଇ ପ୍ରବାହିତ
ତରୁଲତା ପ୍ରାଣୀଗଣେ କରେ ସଞ୍ଜୀବିତ ।
ଏକାଳେ ଏକାନ୍ତେ ଚିନ୍ତେ ଅନାଥ ବିଦେଶୀ
ଅତୀତର ସୁଖ-ଦୁଃଖ-ସ୍ମୃତି-ଜଳେ ଭାସି
ଏହି ଏ ଭାରତ ଭୂମି ଯହିଁ ଆର୍ଯ୍ୟଗଣ
ଜ୍ଞାନ-ଧର୍ମ୍ମ-ବାହୁବଳେ ହୋଇ ବଳୀୟାନ

ଦେବୋପମ ଯଶକୀର୍ତ୍ତି କରି ସଂସ୍ଥାପିତ
ଜଗଦ୍‌ଗୁରୁ ଆସନରେ ଥିଲେ ଅଧିଷ୍ଠିତ ,
ଓହୋ ! ଆତ୍ମସୁଖ ଛଳେ ପର-ସୁଖ ନାଶ
ଏଦୁର୍ନୀତି କିପାଁ ଏବେ ସର୍ବତ୍ର ପ୍ରକାଶ,
ଉନ୍ନତ-ତରୁର ଶାଖା ଯେତେକ ପ୍ରଧାନ
ନିମୋନ୍ମୂଳ ପାଇଁ କାହିଁ ଉତ୍ସାହ-ଜୀବନ ?
ସାଧାରଣ-ହିତ ତରୁ ନିଜ ସ୍ୱାର୍ଥାନଳେ
ଦବାଗ୍ନି ହୁହୁ ଶବ୍ଦେ ପରଚଣ୍ଡେ ଜ୍ୱଳେ
ସ୍ୱଜାତିର ପୁତ୍ର ଥିବ ପାଏ ଅପମାନ
ଧିକ୍ ଭିଜାତିର ପୁତ୍ର ପ୍ରଶଂସା ଭାଜନ
ଶିବ-ପୂଜା ଶ୍ରାଦ୍ଧ ଭୂତ ପ୍ରେତ ଅନୁଗତ
ଦେବତାର ଅଭିଶାପ ବଢ଼ାଇ ସତତ
ସତ୍ୟ ଧର୍ମ୍ମ ଧର୍ମ୍ମ ବଳେ ଏଜଗତ ସ୍ଥିତ
ତାହାଁ ସେ ଗୌରବ ରବି ଚାର ଅସ୍ତମିତ ।
କାହିଁ ସେ ଆତ୍ମୀୟଗଣ ଯାଙ୍କ ସ୍ନେହଜଳେ
ଏହି ଦେହ ଜୀବ-ତରୁ ଅଛି ଧରାତଳେ
କେତେକାଳ ଏକତ୍ରରେ କରି ଅନ୍ୱେଷଣ
ହାୟ ! ନପାଇଲ ଥରେ ଦେଖି ସେ ବଦନ,

ଅବ୍ୟକ୍ତ ଅକାଶ-ଧ୍ୱନି ପରିଚିତ ସ୍ୱର-
ପରି ବେଳେ ବେଳେ ହୁଏ ଶ୍ରବଣ ଗୋଚର
ନଭୋଦେଶେ ବହୁଦୂରେ କ୍ଷୁଦ୍ର ତାରାଗଣ
ବ୍ୟାପି ରହିଛନ୍ତି ଯଥା ଅମର-ଲୋଚନ ,
କହ ବତ୍ସେ ! ଏଅନନ୍ତ ବ୍ୟୋମ ରାଜ୍ୟେ କାହିଁ
ନିବସନ୍ତି ପ୍ରିୟଗଣ ତବ ପଦ ଗୃହ୍ଣ ।
ଏ ଜୀବ ମଣ୍ଡଳେ କିପାଁ ସୁଖଦୁଃଖ ବାରି-
ଆବର୍ତ୍ତେ ଠେଲି କି ଶିକ୍ଷା ଦେଉଛ ଦଶ୍ୱର ,
କାହିଁ ଅସି କାହିଁ ଯିବ, ଜୀବନ-ଉଦ୍ଦେଶ୍ୟ
ଏତତ୍ତ୍ୱ ବାରେକ କହ ବୁଝାଇ ବିଶେଷ ,
ଯାହା ଭାବେଁ ଯାହା ଦେଖେଁ ତତ୍ତୁ ଦୟାମୟ
ଦୃଶ୍ୟାଦୃଶ୍ୟ ସବୁକାର୍ଯ୍ୟ ତବ ହସ୍ତମୟ
ଅଜୀବନ ଅନ୍ତଃକରି ଏଦୃଢ଼ ବିଶ୍ୱାସ
ରହି ଜାଗରୂକ ଭିକ୍ଷା ଦିଅ ମହେଶ୍ୱାସ ।
ଦିବାଦୂତୀ ଉଷା ଯେବେ କରେ ଅଗମନ
ଶୋଭେ ପ୍ରାଚୀ କଳେବରେ ପ୍ରବାଳ ବରଣ ।
ସୁପ୍ତ ଜୀବଗଣ ତେଜି ଆଳସ୍ୟ ବହନ
ନବସୁଖ ନବଆଶା କରନ୍ତି ଧାରଣ ।

ମଧୁକର ମଧୁଗନ୍ଧେ ଗୁଞ୍ଜର ସଙ୍କୋଚରେ
ବସଇ ଉଡଇ ପୁଣି ପୁଷ୍ପ ପୁଷ୍ପାନ୍ତରେ ।
ମୃଦୁଳ ଶୀତଳ ବାୟୁପଥ-ଉର୍ଦ୍ଧ୍ୱ ଦେଶେ
ବିହଙ୍ଗମ ଉଚ୍ଚପ୍ରାଣେ ଉଡ଼ଇ ହରଷେ ।
ଏକାଳେ ଭାନୁଙ୍କ ଦେଖି ଶୁଭ ଆଗମନ
ପଦ୍ମିନୀ-ଅଧରେ ଫୁଟେ ହରଷ ଲକ୍ଷଣ ।
ବହୁ କାଳାନ୍ତରେ ଯଥା ଦମୟନ୍ତୀ ସତୀ
ସୁଖୀନୀ ପାଇ ସ୍ୱପତି ନଳ ଶ୍ରେଷ୍ଠ ମତି ।
ଜ୍ୟୋତିଷ୍ମଣ୍ଡଳେଶ୍ୱର ସହସ୍ର କିରଣେ
ବିନଯେ କୈଳାସେ ସେବା କରିବା କାରଣେ
ସଉଦ୍ୟୋଗି ଉଗ୍ରଭାବ ଶାନ୍ତ ବ୍ୟବହାର
କରିବାକୁ, କରିଛନ୍ତି ଆଦେଶ ପ୍ରଚାର ।
କର୍ତ୍ତବ୍ୟ କାଳ କର୍ତ୍ତନେ ଯେତେ ଅଂଶୁଗଣ
ତାଙ୍କର କାର୍ଯ୍ୟେ ଗୁରୁ କରନ୍ତି ଧାରଣ ।
ସ୍ୱର୍ଣ୍ଣମଣି ରଜକରେ ଭୌତିକ ସକଳ
କାଞ୍ଚନ ବରଣେ ଚୋଲ ଦିଶଇ ମଞ୍ଜୁଳ ।
ଅଂଶୁଗଣ ଅଗମନେ ନାଶି ଦିଶଙ୍କାନ
ଉଦ୍ୟୁକୂଳ ଅନ୍ଧକାର ଖୋଜ ଗୁପ୍ତସ୍ଥାନ

ବାମାକୂଳ-କେଶପାଶେ, ପର୍ବତ ଗହ୍ୱରେ
ପାପୀ-ହୃଦୟରେ ରହେ ନିର୍ଭୟ ଅନ୍ତରେ ।
ବହୁଧନ ଅଧୀଶ୍ୱର ପର ଉପକାରୀ
ସୁପ୍ରଶାନ୍ତ ସମଦର୍ଶୀ ଦେବଗୁଣଧାରୀ
ବିରାଟ କୈଳାସ ଗିରି ଶିଖର ପ୍ରଦେଶେ
ଶିବମନ୍ତ୍ର ଆଶୁତୋଷ ଶଙ୍କର ଆଦେଶେ
ଶିଳ୍ପିରାଜ ବିଶ୍ୱକର୍ମା ଶ୍ରେଷ୍ଠରତ୍ନ ଚୟ
ସନ୍ନିବେଶି ସୁକୌଶଳେ ସୁନ୍ଦର ଆଳୟ
ରଚି, କାରିଗରୀ ଗୁଣବତ୍ତା ନିଦର୍ଶନ
ଦେଖାନ୍ତୁ ଜଗତେ ଜଣି ଅଳକା ଭୁବନ ।
ପ୍ରଜ୍ୱଳନ୍ତ ଅଗ୍ନିକୁଣ୍ଡ ପ୍ରାୟ ସମୁଜ୍ଜ୍ୱଳ
କାଞ୍ଚନ ମଣ୍ଡପ ଶୋଭେ ପୁରି-ମଧ୍ୟସ୍ଥଳ ।
ଶିବଗୌରୀ ନିବସନ୍ତୁ ଅତୀବ ହରଷେ
ଶଶାଙ୍କ ରୋହିଣୀ ଯଥା ଅମ୍ବର ପ୍ରଦେଶେ ।
ମୃଦୁଳ ଅନିଳ ଆଣି ପୁଷ୍ପ ପରିମଳ
ସଂଯୋଗି ନିର୍ଝର-ନୀର-କଣା ସୁଦ୍ଧ ଭର
ଭକ୍ତି ଯୋଗେ ପ୍ରକାଶଇ ଦେବଙ୍କ ପସ୍ୱର
ଶୁଣାଏ ସହସ୍ରକଣ୍ଠେ ସ୍ତୁତି ପ୍ରକୃତିର ।

ରସାଳ ପାଦପ ଡ଼ାଳେ ପଞ୍ଚମ ସ୍ୱରରେ
ହୃଦୟ-ଉଚ୍ଛ୍ୱାସ ମିଷ୍ଟଗାନ ପିକ କରେ
ଇନ୍ଦ୍ରସଭା ମଧ୍ୟେ ଯଥା ଦେବ-ଚିତ୍ତ ହର
ସୁଲଳିତ ଗାନକରେ ଉର୍ବ୍ବଶୀ ସୁନ୍ଦରୀ ।
ସ୍ଥାନେ ସ୍ଥାନେ ବାଂଶବୁଦା ଦ୍ରୁମର ଦୋହଲେ
ଶୁଷ୍କବେଣୁ-ଛିଦ୍ରେ ବାୟୁ-ପୂରଣ କୌଶଳେ,
ସଙ୍ଗୀତ ସ୍ୱର ମଧୁର କର୍ଣ୍ଣତୃପ୍ତିକର
ମୁହୁର୍ମୁହୁ ଉଠଇ ସେ ଧରି ନାନା ସ୍ୱର ।
ନିର୍ଜ୍ଜନେ ପର୍ବ୍ବତେ ଜାତ ହୋଇ କ୍ଷୁଦ୍ରକୁଳେ
ପରାଜୟି ଶ୍ରେଷ୍ଠବଂଶ ପାଦପ ସକଳେ
ଧନ୍ୟ ବାଂଶୀ ! ନିଜଗୁଣେ ଶ୍ରୀକୃଷ୍ଣ ଅଧରେ
ପାଇ ସ୍ଥାନ ଚିରକାଳ ଖ୍ୟାତ ଜଗତରେ ।
ଗିରି-ଉର୍ଦ୍ଧ୍ୱଦେଶୁଁ ପଡ଼ୁ-ସ୍ରୋତ ଅବତର
ମଦକଳ କରୀଗଣ୍ଡୁ ମଦ-ସ୍ରାବ ପରି
ସତତ ସହସ୍ର ବୀଣା ଝଙ୍କାର ଝଙ୍କାରି
ବହୁନାମ ଶୂନ୍ୟଭେଦୀ ଶବଦେ ଉଚ୍ଚାରି
ଅଦମ୍ୟ ଉତ୍ସାହେ ଯାଏ ସ୍ୱକାର୍ଯ୍ୟ ସାଧନେ
ସାଧିବାର ଗତିରୋଧେ ଏମର୍ଥ୍ୟ ଭୁବନେ ?

ସମାପ୍ତ ।

# ନୂତନ ପୁସ୍ତକ ।

ଯୌନ-ନିର୍ବାଚନ ( ରାଜକବି ବାମଣ୍ଡାଧିପତି ଶ୍ରୀମାନ୍ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ମହୋଦୟଙ୍କ ରଚିତ—ଭାବମୟୀ ତୁଳିକାର ଜୀବନ୍ତ ଚିତ୍ର ) — — ୫୦/

ଶୋଭା ସୁନ୍ଦରୀ ( ତୁଳିକାର ଜୀବନ୍ତ ଚିତ୍ର ) ସମ୍ବଲ-ପୁର ହିତୈଷିଣୀ ପତ୍ରିକାର ସମ୍ପାଦକ ଶ୍ରୀଦୀନବନ୍ଧୁ ଗଡନାୟକଙ୍କ ପ୍ରଣୀତ । ରାଜକବି ବାମଣ୍ଡାଧୀଶ୍ୱର ଶ୍ରୀମାନ୍ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ମହୋଦୟଙ୍କଦ୍ୱାରା ପ୍ରଶଂସିତ । ୫୦/

ଧର୍ମ୍ମ-କର୍ମ୍ମ ( ଜାତୀୟ ଉଦ୍‌ବୋଧନ ) ବାମଣ୍ଡା ରାଜଭ୍ରାତା ଶ୍ରୀମାନ୍ ବଳଭଦ୍ର ଦେବ ବଡକୁମାର ସାହେବଙ୍କ ଦ୍ୱାରା ପ୍ରଶଂସିତ । ,, ୫୦/

ଜୀବନ ତରଙ୍ଗ ( ନୈତିକ ଜୀବନ ) ,, ୫୦/

ପରିଶ୍ରମ ( ପାଶ୍ଚାତ୍ୟ ଜଗତର ବହୁମୂଲ୍ୟ ମତ ) ,, ୫୦/

| | | | |
|---|---|---|---|
| ଦୁର୍ଗାବ୍ରତ | – | – | ୮° / ୨ |
| ଦୁଇସଙ୍ଗୀତ | – | – | ୮° ୵ |
| ହେମକମଳିନୀ | – | – | ୮° / ୬ |

ଶ୍ରୀଅଉର୍ଦ୍ଦାଣ ମିଶ୍ର ସେକ୍ରେଟେରୀ
ବୁକ୍ ପବ୍ଲିଶିଂ କୋମ୍ପାନି ଲିମିଟେଡ
ପୋ ଃ ଦେବଗଡ ( ସମ୍ବଲପୁର ଜିଲ୍ଲା )

---



'ସମ୍ବଲପୁର ହିତୈଷିଣୀ' ପତ୍ରିକାର ସମ୍ପାଦକ
ଶ୍ରୀଦୀନବନ୍ଧୁ ଗଡ଼ନାୟକଙ୍କ ରଚିତ
ନୂତନ ପୁସ୍ତକ ।

| | |
|---|---|
| ଧର୍ମ୍ମ-କର୍ମ୍ମ | ୲୦/ |
| ଜୀବନ-ତରଙ୍ଗ | ୲୦/ |
| ଶୋଭାସୁନ୍ଦରୀ | ୲୦/ |
| ପରିଶ୍ରମ | ୲୦/ |
| ବ୍ୟବହାରିକ ଶିକ୍ଷା (ଯନ୍ତ୍ରସ୍ଥ) | ୲୦/ |

ଏକସମୟରେ ଦୁଇଅଣାର ପୁସ୍ତକ ନେଲେ ଡାକ ମାସୁଲ ଲାଗିବ ନାହିଁ ।

ବାମଣ୍ଡା ପ୍ରିଣ୍ଟିଂ କୋମ୍ପାନୀ ଲିମିଟେଡ଼, ଦେବଗଡ଼ ; ଏବଂ ଗ୍ରନ୍ଥକାରଙ୍କ ନିକଟରେ ମିଳେ ।